ତ୍ରୟୋଦଶ ବାର୍ଷିକ

କଳିଙ୍ଗଭାରତୀ ଜନ୍ମଜୟନ୍ତୀ ଉପଲକ୍ଷେ

ସ୍ୱାଗତସମିତିର ଅଧ୍ୟକ୍ଷ

ଶ୍ରୀ ପ୍ରାଣନାଥ ମହାନ୍ତି, ଏମ୍. ଏ., ଆଇ. ଏ. ଏସ୍. ଙ୍କ

# ଅଭିଭାଷଣ

ସମବେତ ସୁଧୀବୃନ୍ଦ !

ଏ ବର୍ଷର ଭଞ୍ଜଜୟନ୍ତୀ ଉପଲକ୍ଷେ ମୋତେ ସ୍ୱାଗତ ସମିତିର ଅଧ୍ୟକ୍ଷ ପଦରେ ବରଣ କରିଥିବା ହେତୁ କଳିଙ୍ଗଭାରତୀର କର୍ମକର୍ତ୍ତାମାନଙ୍କୁ କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ଆପଣମାନଙ୍କୁ ସାଦର ଅଭିନନ୍ଦନ ଜଣାଉଅଛି । ପ୍ରବୀଣ ଭଞ୍ଜପ୍ରେମୀ ସାହିତ୍ୟିକ-ମାନଙ୍କ ନେତୃତ୍ୱରେ ଗତ କେତେବର୍ଷ ହେଲା ଭଞ୍ଜଜୟନ୍ତୀ କଟକଠାରେ ମହାସମାରୋହରେ ପାଳିତ ହୋଇ ଆସୁଅଛି । ଓଡ଼ିଶାସାରା ଭଞ୍ଜସାହିତ୍ୟ ଆଲୋଚନା ଦିଗରେ ଯେଉଁ ବିପୁଳ ଉତ୍ସାହ ଓ ପ୍ରେରଣା ଦେଖାଦେଇଛି ତାହା ବିଶେଷ ଆଶାପ୍ରଦ । ଶିଶୁ ଅନୁଷ୍ଠାନ ହୋଇ ସୁଦ୍ଧା କଳିଙ୍ଗଭାରତୀର ନେତୃତ୍ୱ ଏ ଦିଗରେ ପ୍ରଶଂସନୀୟ । ଭଞ୍ଜସାହିତ୍ୟ ଆଲୋଚନା ପ୍ରତି ଉତ୍ତରୋତ୍ତର ବୃଦ୍ଧି ପାଉଥିବା ଉତ୍କଳର ଜନସାଧାରଣଙ୍କ ସମର୍ଥନ ଆମ୍ଭମାନଙ୍କର ବିଶେଷ ସମ୍ବଳ, ମୋର ଆଶା ଯେ ଭବିଷ୍ୟତରେ ଆପଣମାନଙ୍କର ସାହାଯ୍ୟ, ସହାନୁଭୂତି ଓ ସହଯୋଗ ପାଇଲେ ଭଞ୍ଜସାହିତ୍ୟର ପୁଙ୍ଖାନୁପୁଙ୍ଖ ଆଲୋଚନା ଆହୁରି ବେଶୀ ଆଗେଇ ପାରିବ ।

ମୁଁ ପ୍ରଖ୍ୟାତ ସାହିତ୍ୟିକ ନୁହେଁ, ମୋ ପୌରୋହିତ୍ୟରେ ଏ ବର୍ଷର ଜୟନ୍ତୀ ଉତ୍ସବ କେତେଦୂର ସାଫଲ୍ୟମଣ୍ଡିତ ହେବ ସେ ବିଷୟରେ ଆଶଙ୍କା ରହିଛି ।

"କ୍ୱ ସୂର୍ଯ୍ୟପ୍ରଭବୋ ବଂଶଃ କ୍ୱଚାଲ୍ପବିଷୟା ମତିଃ
ତିତୀର୍ଷୁଃ ଦୁସ୍ତରଂ ମୋହାଦୁଡ଼ୁପେନାସ୍ମି ସାଗରମ୍ ।
ମନ୍ଦଃ କବି ଯଶଃପ୍ରାର୍ଥୀ ଗମିଷ୍ୟାମ୍ୟୁପହାସ୍ୟତା
ପ୍ରାଂଶୁ ଲଭ୍ୟେ ଫଳେ ଲୋଭାଦୁଦ୍ୱାହୁରିବ ବାମନଃ ॥"

ରଘୁବଂଶ ଲେଖିବା ପୂର୍ବରୁ ମହାକବି କାଳିଦାସଙ୍କର ଯେଉଁଭଳି ଭାବସମାବେଶ ହୋଇଥିଲା, ମୋ ପରି ଅଖ୍ୟାତ ସାହିତ୍ୟିକ ପକ୍ଷରେ ଭଞ୍ଜଜୟନ୍ତୀ ଅଭ୍ୟର୍ଥନା ସମିତିର ସଭାପତି ହେବାକୁ ଅନୁପଯୁକ୍ତ ବୋଲି ହୃଦ୍‌ବୋଧ ହେବା ସ୍ୱାଭାବିକ । ସୂର୍ଯ୍ୟବଂଶର ବର୍ଣ୍ଣନା ଅତୀବ ଦୁଷ୍କର ହେଲେହେଁ ମହର୍ଷି ବାଲ୍ମୀକାଦି ପ୍ରାଚୀନ ପଣ୍ଡିତଗଣଙ୍କ ଦ୍ୱାରା ବିରଚିତ ମହତ୍ ଆଖ୍ୟାନ ସମୂହ ଯେପରି କାଳିଦାସଙ୍କର ରଘୁବଂଶ ଲେଖିବାରେ ପ୍ରଧାନ ସହାୟ ଓ ପଥପ୍ରଦର୍ଶକ ହୋଇଥିଲା ।

"ଅଥବା କୃତବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବସୂରିଭିଃ ।
ମଣୌ ବଜ୍ରସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ॥",

ସେହିପରି ପୂର୍ବବର୍ତ୍ତମାନଙ୍କର ସୁଧୀ ସଭାପତିବୃନ୍ଦ ଭଞ୍ଜଜୟନ୍ତୀ ପରିଚାଳନା ବିଷୟରେ ଯେଉଁ ସୁଯୋଗ୍ୟ ପରମ୍ପରା ରଖିଯାଇ ଅଛନ୍ତି ତାହା ଅନୁସରଣ କରି ଏ ବର୍ଷର କାର୍ଯ୍ୟ ସମାହିତ କରିହୋଇବ ବୋଲି ଆଶା ପୋଷଣ କରୁଛି ।

ଗତ କେତେବର୍ଷ ଧରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ବିଶାଳ ଓ ଅନୁପମ ସାହିତ୍ୟ ନାନା ଦିଗରୁ ଆଲୋଚନା ହେଉଥିଲେ ମଧ୍ୟ ଗୋଟିଏ ପ୍ରଶ୍ନ ମନରେ ସ୍ୱତଃ ଉଠୁଛି । ତାହା ଏହି ଯେ ବିଶ୍ୱସାହିତ୍ୟକୁ ଦାନ ଦେଲା ଭଳି ସାମଗ୍ରୀ ଭଞ୍ଜ ସାହିତ୍ୟରେ କଣ ଅଛି ? କେତେକ ସମାଲୋଚକଙ୍କ ମତରେ

ଭଞ୍ଜସାହିତ୍ୟ ଚିରନ୍ତନ ସାହିତ୍ୟ ନୁହେଁ ଏବଂ ତାହା ସବୁ କାଳର ସବୁଶ୍ରେଣୀର ନରନାରୀଙ୍କ ହୃଦୟରେ ସ୍ପନ୍ଦନ ଆଣିବାକୁ ଅସମର୍ଥ । ଏ ମତ ସମୀଚୀନ କି ? ଏ ବିଷୟରେ ଆଜି ସଂକ୍ଷିପ୍ତ ଆଲୋଚନା କରିବି । ମୋ କ୍ଷୁଦ୍ର ମତରେ, ଭଞ୍ଜ ସାହିତ୍ୟରେ ଭାରତୀୟ ଆର୍ଯ୍ୟ ସଂସ୍କୃତିର ପରମ୍ପରା ସୁରକ୍ଷିତ ହୋଇଥିବାରୁ ତାହା ଚିରନ୍ତନ ସାହିତ୍ୟ ଏବଂ ବିଶ୍ୱସାହିତ୍ୟରେ ତାର ସ୍ଥାନ ଅଛି । ଅଧିକନ୍ତୁ ମଧ୍ୟ, ଭଞ୍ଜ ସାହିତ୍ୟର ସଙ୍ଗୀତମୟ ପ୍ରକାଶ ସବୁ କାଳରେ ସବୁ ଶ୍ରେଣୀର ନରନାରୀଙ୍କ ହୃଦୟତନ୍ତ୍ରୀକୁ ଝଙ୍କୃତ କରୁଥିବ । ଭଞ୍ଜ ସାହିତ୍ୟରେ ସଙ୍ଗୀତର ଝଙ୍କାର ଏବଂ ଭାରତୀୟ ତଥା ଓଡ଼ିଶୀ ସାଂସ୍କୃତିକ ଜୀବନର ଅଭିବ୍ୟକ୍ତି ଥିବା ହେତୁ ୮ ଉତ୍କଳମଣି ଗୋପବନ୍ଧୁ ଦାଶ ଉପେନ୍ଦ୍ର ଭଞ୍ଜଙ୍କୁ ଲକ୍ଷ୍ୟ କରି ଯଥାର୍ଥରେ ଲେଖିଥିଲେ:—

"ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ହଳେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଭାରତୀୟ ଆର୍ଯ୍ୟ ସଂସ୍କୃତି ବୋଇଲେ କଣ ବୁଝାଏ ? ଯେପରି ଗଛ କହିଲେ ଚେର, ଗଣ୍ଡି, ଡାଳ, ପତ୍ର, ଫୁଲ, ଫଳ ଥିବା ସଂହତିବିଶିଷ୍ଟ ଗଛକୁ ବୁଝାଏ ଅଥଚ ଚେର, ଗଣ୍ଡି ପ୍ରଭୃତି ଗଛର ଭିନ୍ନ ଭିନ୍ନ ଅଙ୍ଗ ହୋଇ ସୁଦ୍ଧା ପ୍ରତ୍ୟେକର ସ୍ୱତନ୍ତ୍ର ସତ୍ତା ଅଛି ସେପରି ଭାରତର ବିଭିନ୍ନ ଭାଷାଭାଷୀ ଅଞ୍ଚଳମାନଙ୍କର ସଂସ୍କୃତି ସ୍ୱତନ୍ତ୍ର ହେଲେ ମଧ୍ୟ ସେମାନଙ୍କର ସଂହତି ବା ଏକତା ଭାରତୀୟ ବା ଆର୍ଯ୍ୟ ସଂସ୍କୃତି ବୋଲି

ପରିଚିତ । ଭାରତୀୟ ସଂସ୍କୃତିର ଅର୍ଥ ହେଉଛି ଯେ ଭାରତରେ ବାସ କରୁଥିବା ଜନସମୂହଙ୍କ ପରମ୍ପରାଗତ ସଂସ୍କାର ବା ହୃଦ୍‌ଗତ ଭାବର । ଫଳତଃ, ଯେଉଁ ଆଚାର ବ୍ୟବହାର ଭାରତୀୟ ନରନାରୀମାନଙ୍କର ହୃଦୟରେ ଏକରୂପରେ ଓତଃପ୍ରୋତ ହୋଇଯାଇଅଛି ତାକୁ ଛାଡ଼ିବାକୁ ଇଚ୍ଛା କଲେ ବ ଛାଡ଼ି ହେବନାହିଁ । ଦେଶ କାଳ ଭେଦରେ ଓଡ଼ିଶୀ, ବଙ୍ଗାଳୀ, ହିନ୍ଦୁସ୍ଥାନୀ, ଗୁଜରାଟୀ, ମରହଟ୍ଟୀ, ତାମିଲ ଆଦି ପ୍ରତ୍ୟେକ ସଂସ୍କୃତି ଭିନ୍ନ ଭିନ୍ନ ଓ ସ୍ୱତନ୍ତ୍ର ହେଲେ ମଧ୍ୟ, ସେମାନଙ୍କ ମଧ୍ୟରେ ମୌଳିକ ଏକତା ରହିଛି ଯାହାକୁ କି ଭାରତୀୟ ସଂସ୍କୃତି ବୋଲି ଅଭିହିତ କରାଯାଉଛି । ଓଡ଼ିଶୀ, ବଙ୍ଗାଳୀ ଆଜ ପ୍ରାଦେଶିକ ସଂସ୍କୃତି ଭାରତୀୟ ଆର୍ଯ୍ୟ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ଏବଂ ତା ସହିତ ଓତଃପ୍ରୋତ ଭାବରେ ସଂଶ୍ଳିଷ୍ଟ । ଭାରତରେ ଗଙ୍ଗା ରାଷ୍ଟ୍ରନଦୀ ବୋଲି ପରିଚିତ । ସେହିପରି ହିମାଳୟ ରାଷ୍ଟ୍ରପର୍ବତ; କମଳ ରାଷ୍ଟ୍ରପୁଷ୍ପ; ଗୀତା ରାଷ୍ଟ୍ରପୁସ୍ତକ; କୋକିଳ ରାଷ୍ଟ୍ରୀୟ ସାହିତ୍ୟକ ପକ୍ଷୀ; ଭ୍ରମର ରାଷ୍ଟ୍ରୀୟ ସାହିତ୍ୟକ ପତଙ୍ଗ; ବସନ୍ତ କବି-କଳ୍ପନାର ରାଷ୍ଟ୍ରୀୟ ପ୍ରତୀକ; କୃଷି ତଥା ବସ୍ତ୍ରବ୍ୟାପାର ରାଷ୍ଟ୍ରର ଜୀବନ ସ୍ରୋତ; ଶଙ୍ଖଧ୍ୱନି ବିଜୟ-ନିନାଦ; ଭାରତୀୟ ନାରୀ ସମାଜର ସୌନ୍ଦର୍ଯ୍ୟବର୍ଦ୍ଧକ ପରିଚ୍ଛଦ; ସିନ୍ଦୂର ହିନ୍ଦୁନାରୀର ସୌଭାଗ୍ୟ ସୂଚକ ଶିରୋଭୂଷଣ; ପାତିବ୍ରତ୍ୟ, ଭାରତୀୟ ନାରୀଜାତିର ସମ୍ମାନ । ତପସ୍ୟା ଓ ତ୍ୟାଗ ଭାରତୀୟ ସଂସ୍କୃତିର ଆଦର୍ଶ । ଧୃତି, କ୍ଷମା,

ଦମ, ଅସ୍ତେୟ, ଶୌଚ, ଇନ୍ଦ୍ରିୟନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ ଭାରତୀୟ ସନାତନ ଧର୍ମର ସ୍ୱରୂପ ।

"ଧୃତିଃ କ୍ଷମା ଦମୋଽ ସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ
ଧୀର୍ବିଦ୍ୟା ସତ୍ୟ ମକ୍ରୋଧୋ ଦଶକଂ ଧର୍ମଲକ୍ଷଣଂ ।"

(ମନୁସ୍ମୃତି)

ଏ ସବୁ ବିଷୟରେ ପ୍ରତ୍ୟେକ ଭାରତୀୟର (ସେ ଓଡ଼ିଆ ହେଉ ବା ବଙ୍ଗାଳୀ ହେଉ ବା ତାମିଲ ଓ ତେଲେଗୁ ହେଉ ବା ହିନ୍ଦୁସ୍ତାନୀ ବା ଗୁଜରାଟି ହେଉ ) ଏକ ଭାବ, ଏକ ବିଗ୍ଭର ଏବଂ ଏକ ସଂସ୍କାର । ଏହାକୁ କୁହାଯାଏ ଭାରତୀୟ ସଂସ୍କୃତିର ମୌଳିକ ଏକତା ବା ଦାର୍ଶନିକ ଭାଷାରେ " ବହୁରେ ଏକ ଏବଂ ଏକରେ ବହୁ" । ଭାରତୀୟ ସଂସ୍କୃତିର ଏହି ଏକତା ବେଦର ନିମ୍ନଲିଖିତ ପ୍ରାମାଣିକ ମନ୍ତ୍ର ଉପରେ ପ୍ରତିଷ୍ଠିତ :—

ସମାନୀ ବ ଆକୂତିଃ ସମାନା ହୃଦୟାନି ନଃ
ସମାନମସ୍ତୁ ବୋ ମନଃ ଯଥା ନଃ ସୁସହାସତିଃ ।
ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂ ବୋ ମନାଂସି ଜାନତାଂ
ଦେବା ଭାଗଂ ଯଥା ପୂର୍ବଂ ସଞ୍ଜାନାନା ଉପାସତେ ।"

ଅର୍ଥାତ୍ " ଆମ୍ଭମାନଙ୍କର ସଂକଳ୍ପ ସମାନ ହେଉ; ଆମ୍ଭମାନଙ୍କର ହୃଦୟର ବିଗ୍ଭର ସମାନ ହେଉ; ଆମ୍ଭମାନଙ୍କର ମାନସିକ ମନ୍ତ୍ରଣା ବା ପରାମର୍ଶ ସମାନ ହେଉ । ଯେପରି ଆମ୍ଭେମାନେ ଏକାଠି ରହିପାରିବା ଏବଂ ଏକାଠି ମିଳି କାମ କରିପାରିବା । ଆମ୍ଭେମାନେ ପରସ୍ପର ମେଳନକାରକ ଭାଷା ବ୍ୟବହାର କରିବା ଅର୍ଥାତ୍ ଆମ୍ଭମାନଙ୍କର ରାଷ୍ଟ୍ରଭାଷା ଏକ ହେଉ । ଆମ୍ଭମାନଙ୍କର ମାନସିକ ବିଗ୍ଭର ସମାନ ହେଉ, ଯେପରି ସର୍ବ-

ପ୍ରଥମ ଦେବବୃନ୍ଦ ନିଜ ନିଜ ଭାଗକୁ ସମାନ ରୂପରେ ସ୍ୱୀକାର କରନ୍ତି "—ଏହା ଅାଲ୍ଲା ଈଶ୍ୱର ମାନବ ସମାଜକୁ ଦେଉଛନ୍ତି ।

## ଗଙ୍ଗାନଦୀର ବର୍ଣ୍ଣନା

ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟରେ ଭାରତୀୟ ଆର୍ଯ୍ୟ ସଂସ୍କୃତିର ପରମ୍ପରା କିପରି ସଂରକ୍ଷିତ ହୋଇଅଛି ତାହା ବର୍ତ୍ତମାନ ଆଲୋଚନା କରାଯାଉ । ତ୍ରିସ୍ରୋତନଦୀ ତ୍ରିମାର୍ଗଗା ଗଙ୍ଗାନଦୀର ଅନୁପମ ବର୍ଣ୍ଣନା ବୈଦେହୀଶ ବିଳାସରେ କରା ଯାଇଅଛି ଯଥା:—
" ବିଚଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ ହରେ ସୁରବର ତାପ ଗୁରୁ ଧାରା ସେ । ବହେ ମକର-କେତନ ଉଚ୍ଛନ୍ନ ରତି ସମାନ ପୂରିତ ରହିଛି ପୁଣି ଅଶେଷ ରସେ । ବିଦ୍ୟ ହୈମବତୀ ପଦରେ । ବିଷକଣ୍ଠ-ତୋଷଦାମ୍ନି ବେନି ମତଲେ ।" ଏଠାରେ ଗଙ୍ଗା ନଦୀର ସର୍ବବ୍ୟାପକତ୍ୱ ଅର୍ଥାତ୍ ଆକାଶ, ପାତାଳ ଓ ପୃଥିବୀ ସହିତ ସମ୍ପର୍କ, ତଥା ସୌନ୍ଦର୍ଯ୍ୟ ଓ ଗମ୍ଭୀରତ୍ୱ ପ୍ରତିପାଦିତ କରା ଯାଇଅଛି । ହିମାଳୟ, ଶିବ, ପାର୍ବତୀ, ଇନ୍ଦ୍ର, ଶଚୀ, ସୂର୍ଯ୍ୟ ଏବଂ ରତିଙ୍କ ସହିତ ସମ୍ପର୍କ ପ୍ରଃ ଷ୍ଠିତ କରି କବି ପାର୍ଥିବ ଗଙ୍ଗାନଦୀର ବର୍ଣ୍ଣନାକୁ ଅପାର୍ଥିବ ଦ୍ରବ୍ୟ ଦୃଷ୍ଟିରେ ଉପାଣିତ କରି ଅଛନ୍ତି ଏବଂ ଅତ୍ୟଧିକ କମନୀୟ କରି ପାରିଛନ୍ତି ।

## କମଳ ବର୍ଣ୍ଣନା

ପୁଷ୍କରିଣୀ ବର୍ଣ୍ଣନା ଏବଂ ନାୟିକାର ଅଙ୍ଗବର୍ଣ୍ଣନା ଆଦିରେ ଉପେନ୍ଦ୍ରଭଞ୍ଜ ରାଷ୍ଟ୍ରୀୟ କମଳ ପୁଷ୍ପ ପ୍ରତି ବିଶେଷ ଗୁରୁତ୍ୱ ଦେଇଛନ୍ତି । ଲାବଣ୍ୟବତୀ କାବ୍ୟରେ:—

"ଦେଖି ରେ ନଳିନୀ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ,,

ଭାରତୀୟ ସଂସ୍କୃତିର ଆଦର୍ଶ ତଥା ଆଳଙ୍କାରିକ ଆଦର୍ଶ ଉପରେ ପ୍ରତିଷ୍ଠିତ ଭଟ୍ଟି କାବ୍ୟରେ ଉଲ୍ଲେଖ ଅଛି:—

"ନ ତଜ୍ଜଳଂ ଯନ୍ନ ସୁଚାରୁ ପଙ୍କଜଂ
ନ ପଙ୍କଜଂ ତଦ୍ ଯଦଲୀନ ଷଟ୍‌ପଦଂ
ନ ଷଟ୍‌ପଦୋଽସୌ ନ ଜୁଗୁଞ୍ଜ ଯଃ କଳଂ
ନ ଗୁଞ୍ଜିତଂ ତନ୍ନ ଜହାର ଯନ୍ମନଃ"

ଅର୍ଥାତ୍ ସେ ଜଳ ଜଳ ନୁହେଁ ଯହିଁରେ ସୁନ୍ଦର ପଦ୍ମ ନ ଫୁଟିଛି, ଏବଂ ସେ ପଦ୍ମ ପଦ୍ମ ନୁହେଁ ଯହିଁରେ ଭ୍ରମର ଆସକ୍ତ ନ ହୋଇଛି; ସେ ଭ୍ରମର ଭ୍ରମର ନୁହେଁ ଯାହାର ଜନମନୋହାରୀ କଳଗୁଞ୍ଜନ ନାହିଁ । କେବଳ ସରୋବର ବର୍ଣ୍ଣନା କରିବାକୁ ଯାଇ କବି ପଦ୍ମକୁ ଫୁଟାଇ ଅଛନ୍ତି ଏବଂ ପଦ୍ମ ବର୍ଣ୍ଣନା କରିବାକୁ ଯାଇ ଭ୍ରମରକୁ ତା ଉପରେ ବସାଇଛନ୍ତି । ତଦ୍ଦ୍ୱାରା ଭାରତୀୟ ସଂସ୍କୃତିର ଆଦର୍ଶ ତଥା ଆଳଙ୍କାରିକ ଆଦର୍ଶ ଅପ୍ରତିହତ ରଖା ଯାଇଅଛି । ବୈଦେହୀଶବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଓ ସୁଭଦ୍ରା ପରିଣୟାଦି କାବ୍ୟମାନଙ୍କରେ ନାୟିକାର ମୁଖଶୋଭା ଓ ଦେହର ସୌରଭକୁ ପଦ୍ମସଙ୍ଗେ ତୁଳନା କରିବା ଭାରତୀୟ ସଂସ୍କୃତିର ଆଦର୍ଶସମ୍ମତ ହୋଇଅଛି । ପ୍ରଭାତ ବର୍ଣ୍ଣନା କରିବାକୁ ଯାଇ କବି ପଦ୍ମର ବିକାଶକୁ ସୂର୍ଯ୍ୟୋଦୟ ସହିତ ସମ୍ବନ୍ଧିତ କରି ଭାରତୀୟ ପରମ୍ପରା ରକ୍ଷା କରିଛନ୍ତି ଯଥା—:

"କୁମୁଦ ବିକାଶ ତୁଟି ତୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ ।
ହରଷ ବିରସ ପାଳିଟା ପାଲଟି ମଧୁପ ଠୋ ବିଠ କସେ ।"

(କୋ:ବ୍ର:ସୁନ୍ଦରୀ)

## ବସନ୍ତ ବର୍ଣ୍ଣନା

ଭଞ୍ଜ ସାହିତ୍ୟରେ ସବୁ ଋତୁର ବର୍ଣ୍ଣନା ଥିଲେ ମଧ୍ୟ ବସନ୍ତ ଋତୁର ବର୍ଣ୍ଣନା ଉପରେ ଅତ୍ୟଧିକ ଗୁରୁତ୍ୱ ଦିଆଯାଇଅଛି । ଯଥା:—

"ବସନ୍ତ ସମୟ ଅତି ରସମୟ ଉଭୟ ପ୍ରବେଶ ଆସି ଯେ
ବିଦ୍ରୁମ ଛବି ସୁଦ୍ରୁମ ଲତା ଭାବି ପଲ୍ଲବେ ସରାଗ ଦିଶି ଯେ,
ବିକଶି, ବିକଶି କୁସୁମମାନ ଯେ
ବୋଲାଇଲେ ଜବ ନବ ପୁଷ୍ପବନ୍ତ ଭାବରସ କଲେ ଦାନ ଯେ ॥"

(ବୈଦେହୀଶବିଳାସ)

"ଅତି ରସମୟ ବସନ୍ତ ସମୟ ବିଜୟ ପ୍ରଣୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ ବିହାର
ଆଗତେ, ଆରୋହିଲା ନାଗେଶ୍ୱରକୁ
ଋତୁରାଜ ପଦୁଁ ସେ ରଜ ଦେଖାଲା ଗୃହିଁ ପ୍ରଫୁଲ୍ଲ କେଶରକୁ ॥"

(କୋ: ବ୍ର: ସୁନ୍ଦରୀ)

"ଋତୁରାଜ ବସନ୍ତ ପ୍ରବେଶ ହେଲା ଆସି
ରହିଲା ରାଜ୍ୟରେ ଚିର ଦହିଲା ବିଦେଶୀ ॥
ରସାଳେ କୋକିଳ ବସି ଦମ୍ନଣଶୀ ନାଶେ;
ରବିକୁ ହୁଏ କରନ୍ତି ଭ୍ରମ ନକ୍ଷୀ ଘୋଷେ ॥
ରୂପାଙ୍କୁ ସଖାଗଣେ ମଧୁ ଋତୁ ମୋଦେ
ରାଜାଅଭିଷେକ କଲି ଶୁକନାଦ ବେଦେ ॥
ରାଜ ଉନ୍ମତ୍ତ କୁସୁମ-ମାଧୁରୀ ମାଧୁରୀ
ରୋଲମ୍ବ ମଲ୍ଲୀ ମୁକୁଳେ ଶଙ୍ଖନାଦ କରି ॥"

(ରସପଞ୍ଚକ)

ଏଠାରେ ବସନ୍ତକୁ "ଅତ ରସମୟ" "ଋତୁରାଜ" ବୋଲି କଳ୍ପନା କରା ଯାଇଅଛି । ରାଜାଙ୍କର ଅଭିଷେକବେଳେ ବେଦପାଠ ଓ ଶଙ୍ଖଧ୍ୱନି ହୁଏ । ବସନ୍ତ ଋତୁ ଆଗମନରେ ଶୁକ-ସ୍ୱନ ଓ ପୁଷ୍ପଚମ୍ବନାଭିଳାଷୀ ମଧୁପର ଗୁଣୁ ଗୁଣୁ ଶବ୍ଦ ଯଥାକ୍ରମେ ବେଦପାଠ ଓ ଶଙ୍ଖଧ୍ୱନି ରୂପରେ ଚିତ୍ରିତ କରି ଉପେନ୍ଦ୍ର ଭଞ୍ଜ କଳ୍ପନା-ବିଳାସର ଅସରନ୍ତ ଉତ୍ସ ପ୍ରବାହିତ କରି ପାରିଛନ୍ତି । ଏ ବାକ୍ୟ ନୀରସ ବା ଶୁଷ୍କ ହେବାର ନୁହେ । ଆର୍ଯ୍ୟ ସଂସ୍କୃତିର ସତ୍ତା ଥିବା ପର୍ଯ୍ୟନ୍ତ ଭଞ୍ଜଙ୍କ ବସନ୍ତ ବର୍ଣ୍ଣନା ଚିର ନୂତନ ହୋଇ ରହିଥିବ । ବସନ୍ତକୁ ଋତୁରାଜ ପଦରେ ଅଭିଷିକ୍ତ କରାଇ, ଶୁକ-ପକ୍ଷୀକୁ ଅଭିଷେକ କାଳର ବେଦପାଠକ ଓ ମଧୁପକୁ ଶଙ୍ଖବାଦକ ଭାବରେ ଚିତ୍ର କରି ଉପେନ୍ଦ୍ର ଭଞ୍ଜ ପ୍ରକୃତି ଉପରେ ମନୁଷ୍ୟତ୍ୱ ଆରୋପ କରିଛନ୍ତି । ତାହା ଭାରତୀୟ ପରମ୍ପରା ସମ୍ମତ । ମହା କବି କାଳିଦାସ ବସନ୍ତବର୍ଣ୍ଣନା ପ୍ରସଙ୍ଗରେ ଋତୁସଂହାରରେ ଲେଖିଛନ୍ତି ।

"ପ୍ରଫୁଲ୍ଲ ଚୂତାଙ୍କୁର ତୀକ୍ଷ୍ଣ ସାୟକୋ
ଦ୍ୱିରେଫମାଳା ବିଳସଦ୍ଧନୁର୍ଗୁଣଃ ।
ମନାଂସି ବେଦ୍ଧୁଂ ସୁରତ ପ୍ରସଙ୍ଗିନାଂ
ବସନ୍ତ ଯୋଦ୍ଧା ସମୁପାଗତଃ ପ୍ରିୟେ ।"

ଅର୍ଥାତ୍, " ହେ ପ୍ରିୟେ ! ଯୋଦ୍ଧା ରୂପରେ ବସନ୍ତଋତୁ ପୃଥିବୀ ପୃଷ୍ଠକୁ ଆସିଛନ୍ତି; ଆମ୍ରଗଛର ନବ କଳିକା ବସନ୍ତ ଯୋଦ୍ଧାର ତୀକ୍ଷ୍ଣ ଧନୁର୍ବାଣ ପରି ହୋଇଅଛି ଏବଂ ଆମ୍ରଗଛରେ ବସିଥିବା ଭ୍ରମରମାଳା ଧନୁର୍ଗୁଣ ସଦୃଶ ହୋଇଅଛି; ଏତଦ୍ୱାରା ବସନ୍ତ କାମିନୀମାନଙ୍କର ହୃଦୟକୁ ଜୟ କରିବ ।"

ସାହିତ୍ୟଦର୍ପଣକାର ବସନ୍ତକାଳୀନ ମୃଦୁ ମଳୟାନିଳ ବର୍ଣ୍ଣନା କରି ତହିଁରେ କପରି ମନୁଷ୍ୟତ୍ୱ ଆରୋପ କରିଅଛନ୍ତି ତାହା ନିମ୍ନଲିଖିତ ଶ୍ଳୋକରୁ ବୁଝାପଡ଼ିବ :—

ଲତାକୁଞ୍ଜଂ ଗୁଞ୍ଜନ୍ ମଦବଦଳିପୁଞ୍ଜଂ ଚପଳୟନ
ସମାଲିଂଗନ୍ନଙ୍ଗମ୍ ଦ୍ରୁତତର ମନଙ୍ଗମ୍ ପ୍ରବଳୟନ୍
ମରୁନ୍ମନ୍ଦଂ ମନ୍ଦଂ ଦଳିତ ମକରନ୍ଦଂ ତରଳୟନ୍
ରଜୋବୃନ୍ଦଂ ବନ୍ଦନ୍ କିରତି ମକରନ୍ଦଂ ଦିଶି ଦିଶି ।”

ଅର୍ଥାତ୍, “ ଲତାକୁଞ୍ଜରେ ଗୁଣୁ ଗୁଣୁ ଶବ୍ଦ କରୁଥିବା ଉନ୍ମତ୍ତ ଭ୍ରମରସମୂହକୁ ଚପଳ କରି, ଅଙ୍ଗ ଆଲିଙ୍ଗନ କରି, ଶୀଘ୍ର ଅନଙ୍ଗକୁ ପ୍ରବଳ କରି, ଦଳିତ ମକରନ୍ଦକୁ ତରଳ କରି, ପୁଷ୍ପରେଣୁମାନଙ୍କୁ ମନ୍ଦମନ୍ଦ ଭାବରେ ଦିଗମାନଙ୍କରେ ବିତରଣ କରି ଏହି ଦକ୍ଷିଣା ପବନ ବହୁଅଛି ।

ଇଂରେଜ କବି ଓ୍ୟାର୍ଡ଼ସ୍‌ଓ୍ୟାର୍ଥ କପରି ପ୍ରକୃତିରେ ମାନବ ଜୀବନର ସତ୍ତା ଅନୁଭବ କରିଥିଲେ ତାହା ନିମ୍ନଲିଖିତ ପଦ୍ୟାଂଶରୁ ପ୍ରମାଣିତ ହୁଏ :—

“ For I have learned,
To look on Nature, not as in the hour
Of thoughtless youth, but hearing often times
The still, sad music of humanity’

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ କବି ପ୍ରମାଣ କରିଛନ୍ତି ଯେ ଋତୁମାନଙ୍କ ମଧ୍ୟରେ ବସନ୍ତ ପ୍ରଧାନ; ନଦୀମାନଙ୍କ ମଧ୍ୟରେ ଗଙ୍ଗା

ନଦୀ ପ୍ରଧାନ; ପୁରୁଷମାନଙ୍କ ମଧ୍ୟରେ କନ୍ଦର୍ପ ପ୍ରଧାନ ଏବଂ ହସ୍ତୀ-ମାନଙ୍କ ମଧ୍ୟରେ ଐରାବତ ପ୍ରଧାନ ଯଥା :—

" ସୁରଭି ପଣରେ ସୁରଭି ଗୁଣରେ ସୁରଭି-ପୁରେଶ ନନ୍ଦନା ।
ଯେମନ୍ତ ମତ୍ତକାଶିନୀଙ୍କ ସୀମନ୍ତ-ମଣିଭୂଷା ହୋଇ ବନ୍ଦନା ।
ତେମନ୍ତ, ସୁରଭିରତ୍ନରେ ପ୍ରଧାନ ।
ନଦୀରେ ଗଙ୍ଗା, ପୁରୁଷେ ମନସିଜ, ଗଜେ ଇନ୍ଦ୍ରଗଜ ପ୍ରଧାନ ।

## କୋକିଳ ବର୍ଣ୍ଣନା

ଭଞ୍ଜ ସାହିତ୍ୟରେ ନାନା ପକ୍ଷୀମାନଙ୍କର ବର୍ଣ୍ଣନା ଥିଲେ ମଧ୍ୟ ବିରହୀଙ୍କ ପକ୍ଷରେ କୋକିଳ ବର୍ଣ୍ଣନା ଉପରେ ଗୁରୁତ୍ୱ ଦିଆଯାଇଅଛି । ତାହା ବିରହୀଙ୍କ ସଂସ୍କୃତିକ ପରମ୍ପରା ସମ୍ମତ । ବୈଦେହୀଶ ବିଳାସରେ ବିରହିଣୀ ସୀତା ରାମଚନ୍ଦ୍ରଙ୍କ ନିକଟକୁ ଦୂତ ଭାବରେ ପଠାଇବାକୁ କୋକିଳକୁ ମନୋନୀତ କରିଛନ୍ତି ଯଥା :—

"ବିପିନ ରସାଳେ ସଂଯୋଗୀ ରସାଳେ ପଞ୍ଚମ ସ୍ୱରକୁ ତହିଁ ଯେ ।
ବହନ୍ତେ କୋକିଳ ଅଗ୍ରରେ ପଙ୍କିଳ ଗଣ୍ଡ କରି ବଇଦେହୀ ଯେ ।
ବୋଲନ୍ତି । ବୋଲଉ ମନ୍ଦତନୟ ଯେ ।
ବିଶେଷରେ ମନ୍ଦ ତନୟ ନ କର ପରଭୃତ ନାମେ ଜୟ ଯେ ।
ବନେ ଅଇଲୁ ତିନ ବେନି ରହିଲେ ଏକ ଗଲା ଏକା ହୋଇ ଯେ,
ବୋଲିବାକୁ ଆହା କେହିନାହିଁ ସାହା ସେ ଜନ ବଞ୍ଚିବ କେହି ଯେ ।
ବଲ୍ଲଭେ । ବନପ୍ରିୟ କହ ଏତେ ଯେ ।
ବ୍ରହ୍ମାଣ୍ଡନାଥ ହାତ ଧରି ଅନାଥ କ ଶୁଭୁଅଛି ଜଗତେ ଯେ ।"

ଶଙ୍ଖଧ୍ୱନି ବର୍ଣ୍ଣନା—

ଯାବତୀୟ ମଙ୍ଗଳ କାର୍ଯ୍ୟରେ ଏବଂ ମାଙ୍ଗଳିକ ମୁହୂର୍ତ୍ତରେ ଶଙ୍ଖଧ୍ୱନି ଆର୍ଯ୍ୟ ସଂସ୍କୃତି ସମ୍ମତ । ଭଞ୍ଜ ସାହିତ୍ୟରେ ଏ ଆଦର୍ଶ ଅପ୍ରତିହତ ରହିଛି । ଯଥା—

"ଭୁଜଙ୍ଗ ଅଙ୍ଗ ହିଗନ୍ଧି ପୂର ଦର ନାଦ ଦରପ୍ରଦ ହୋଇ
ଭୁଜଙ୍ଗ ବନ୍ଧକୀ ଯୋଗ ସଂଯୋଗକୁ ଚନ୍ଦ୍ରଯୁଗ ଗଲେ ଥୋଇ
ସେ ଧନ୍ୟ । ତାଙ୍କଠାରୁ ଯେଉଁ ଗଲେ ଭିନ୍ନ ।
ଦେନ ପ୍ରୀତି କେବେ ନୋହେ ଭିନ୍ନ । ଏହି ମତ ପ୍ରତି ସତିଦିନ ।"

ଏଠାରେ ପ୍ରଭାତ ବର୍ଣ୍ଣନା କରିବାକୁ ଯାଇ କବି ବିଷ୍ଣୁ ମନ୍ଦିର ଓ ଶିବ ମନ୍ଦିରରେ ଶଙ୍ଖନାଦଜନିତ ମଙ୍ଗଳ ଧ୍ୱନିର ତଥା ଦିବସର ପ୍ରାରମ୍ଭର ସୂଚନା ଦେଇ ଅଛନ୍ତି । ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଉଥିବା ସମୟରେ ନାନା ମଙ୍ଗଳ-ବାଜଣା ବାଜୁଥିଲେ ମଧ୍ୟ ଶଙ୍ଖ ତହିଁରେ ପ୍ରଧାନ ଥିଲା । ଯଥା—

"ଶଙ୍ଖ ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମହୁରୀ
ଘଣ୍ଟ ପଟହ କଂସାଳ ତାଳ ତୂରୀ ଭେରୀ ।
କର୍ଣ୍ଣାଳ କାହାଳ ବଜଘୋଷ ବେଣୁ ଡମ୍ପା
ମୁରଜ ଡିଣ୍ଡିମ ଦୁନ୍ଦୁଭିରେ ମହୀ କମ୍ପା
ବୀଣା ରବ ତାଳୀ ତାଳ ମୃଦଙ୍ଗ ମର୍ଦ୍ଦଳ
ସ୍ୱରମଣ୍ଡଳୀ ଅମୃତୀ ବାଏ ଗୁଣୀକୁଳ ।
ଗଣକଗଣ ମଙ୍ଗଳାଷ୍ଟକ ପଢ଼ୁଛନ୍ତି
ମଙ୍ଗଳ ଗୀତ ଗାବନ୍ତି ଗଣିକା ଯୁବତୀ ।

ଆର୍ଯ୍ୟ ସଂସ୍କୃତି ଅନୁସାରେ କେଉଁ କେଉଁ ବାଜା ମଙ୍ଗଳ ବାଜଣା ତାହା ନିମ୍ନଲିଖିତ ମଙ୍ଗଳ ଶ୍ଳୋକରୁ ଜଣାପଡ଼େ—

"ଝିଲ୍ଲୀ ଝର୍ଝରିକା ମୃଦଙ୍ଗ ପଟହୋ ଭେରୀ ଚ ଶଙ୍ଖଧ୍ୱନିଃ
ବୀଣା ଡୁମ୍ବୁରୁ ସନକଷ୍ଟ ପଣବୋ ଘଣ୍ଟାରବୋ ଦର୍ଦ୍ଦରଃ ।
ତାଳଃ କାହଳଃ ଦୁନ୍ଦୁଭିଷ୍ଟ ଡିମ୍ବୁରୁ ଢକ୍କା ଚ ବଂଶୀଧ୍ୱନିଃ
ଏତେ ବାଦ୍ୟଗଣାଃ ସୁଘୋଷ ସହିତାଃ କୁର୍ବନ୍ତୁ ତେ ମଙ୍ଗଳମ୍ ।"

ବିବାହ କାର୍ଯ୍ୟ ସମାପନର ଅବ୍ୟବହିତ ପୂର୍ବରୁ କନ୍ୟାପିତା ଶଙ୍ଖରେ ପାଣି ନେଇ କନ୍ୟା ସମ୍ପ୍ରଦାନ କରେ । ଏ ବିଧି ଆର୍ଯ୍ୟ ସଂସ୍କୃତି ସମ୍ମତ । ଲାବଣ୍ୟବତୀର କବି ତେଣୁ ଗାଇଛନ୍ତି —

କମ୍ବୁରେ ଅମ୍ବୁ ତୋଳିଣ ଦେଲା କନ୍ୟାତାତ
କଣ୍ଠକୁ ସମାନ ନୋହିବ କି ଅବା ଶ୍ୱେତ ।"

ନାରୀଚରିତ୍ର ଚିତ୍ରଣ—

ଭାରତୀୟ ସଂସ୍କୃତିର ଆଦର୍ଶ ଅନୁସାରେ ନାରୀ ସମାଜର ସୌନ୍ଦର୍ଯ୍ୟବର୍ଦ୍ଧକ ପରିଚ୍ଛଦ ସ୍ୱରୂପ; ସିନ୍ଦୂର ବିନ୍ଦୁ ନାରୀର ସୌଭାଗ୍ୟ ପୂର୍ଣ୍ଣ ଶିରୋଭୂଷଣ ଏବଂ ପାତିବ୍ରତ୍ୟ ନାରୀଜାତିର ସମ୍ମାନ । ଭଞ୍ଜସାହିତ୍ୟରେ ଏ ଆଦର୍ଶ ଅପ୍ରତିହତ ରହିଛି । ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ରସିକ ହାରାବଳୀ, ପ୍ରେମସୁଧାନିଧି, ସୁଭଦ୍ରା ପରିଣୟ ଓ ବୈଦେହୀଶ ବିଳାସ ପ୍ରଭୃତି କାବ୍ୟର ନାୟିକାଗଣ ଅନୁପମ ସୌନ୍ଦର୍ଯ୍ୟ ଓ ଅଙ୍ଗସୌଷ୍ଠବର ଅଧିକାରିଣୀ । ସେମାନେ ପାତିବ୍ରତ୍ୟ ବା ଏକନିଷ୍ଠ ପ୍ରେମର ଜୀବନ୍ତ ଆଦର୍ଶ ଏବଂ ସିନ୍ଦୂର ସେମାନଙ୍କର ସର୍ବୋତ୍କୃଷ୍ଟ ଶିରୋଭୂଷଣ । ମଧ୍ୟଯୁଗୀୟ ଓଡ଼ିଆ

ସାହିତ୍ୟରେ କବିମାନେ ନାୟିକାକୁ ନାନା ଭାବରେ କଳ୍ପନା କରିଛନ୍ତି । ରସକଲ୍ଲୋଳରେ ଘନକୃଷ୍ଣ ନାୟିକାକୁ ସରୋବରରୂପେ କଳ୍ପନା କରିଛନ୍ତି ।

"ଟେକଇଁ ଗୋପୀ ମୂର୍ତ୍ତି ଅନାଇ ବୋଲନ୍ତି
ତୋ ଅଙ୍ଗ କାମ-ସରୋବର
କାନ୍ତି ସ୍ୱଚ୍ଛଜଳ କେଶ ଶଇବାଳ ବଦନ କମଳ ପ୍ରକାର
କମଳା । ନୟନଯୁଗଳ ଶଫରୀ
କୁଚ ଚକ୍ରବାକ ନଖ କହ୍ଲାରକ ସକଳ ଜନ ମନୋହାରୀ ॥

କାଳିଦାସଙ୍କର ଅନୁରୂପ ବର୍ଣ୍ଣନାଦ୍ୱାରା ଘନକୃଷ୍ଣ ପ୍ରଭାବିତ ହୋଇଛନ୍ତି—

"ବାହୂ ଦ୍ୱୌ ଚ ମୃଣାଳମାସ୍ୟ କମଳଂ ଲାବଣ୍ୟଲୀଳାଜଳଂ
ଶ୍ରୋଣୀ ତୀର୍ଥଶିଳା ଚ ନେତ୍ର ଶଫରୀ ଧମ୍ମିଲ୍ଲ ଶୈବାଳକଂ
କାନ୍ତାୟାଃ ସ୍ତନଚକ୍ରବାକଯୁଗଳଂ କନ୍ଦର୍ପବାଣାନଳୈଃ
ଦଗ୍ଧାନା ମବଗାହନାୟ ବିଧିନା ରମ୍ୟଂ ସରୋ ନିର୍ମିତଂ ॥"

ଆଧୁନିକ ଓଡ଼ିଆ କବି ଗୋଲୋକ ପ୍ରଧାନ "ଇନ୍ଦୁରେଖା" କାବ୍ୟରେ ନାୟିକାକୁ ନଦୀ ରୂପରେ କଳ୍ପନା କରିଛନ୍ତି । ଯଥା —

ଅଙ୍ଗନା ହୋଇଲା ସରିତ ସରି । ଅଶେଷ ରସ ଯହିଁ ଅଛି ପୂରି ।
କରଯୀତ ତୀର ଅତି ସୁନ୍ଦର । ଖୋସା ସୁଲଗ୍ନିକ ମନୋହର ।
କୋକସ୍ତନ ଯହିଁ । ଚେଳଖସୁଁ ଜଳ ମଧ୍ୟୁ ବହଇ ।"

ଭଞ୍ଜଙ୍କ ନାୟିକା ସରୋବର ନୁହେଁ, ନଦୀ ନୁହେଁ, ମାତ୍ର ସୁଗନ୍ଧବନ୍ତ ଗମନଶୀଳା ସ୍ୱର୍ଣ୍ଣଲତା, ଯହିଁରେ ସାତ ପ୍ରକାର ଫୁଲ, ସାତ ପ୍ରକାର ଫଳ ଏବଂ ସାତ ପ୍ରକାର ପକ୍ଷୀ ଅଛନ୍ତି ଯଥା —

"ସ୍ୱର୍ଣ୍ଣପୁରେ ଯାଇ ପର୍ବତ କନ୍ଦରେ ମହାଜାତ ହେମମଞ୍ଜରୀ
ସୁଗନ୍ଧବର୍ଣ୍ଣ ସ୍ୱଚ୍ଛନ୍ଦରେ ଚଳନ୍ତ ପବନ ବଳରେ କ ମାଧୁରୀ ·
ସମ୍ପୂର୍ଣ୍ଣ-ତହିଁ ପୁଣି ଫୁଲ ଏତେକ !
ସରୋରୁହ ଚମ୍ପା କୁମୁଦ ପାଟଳୀ ନଆଳୀ ଶିରୀଷ ଅଶୋକ ।
ସଫଳ ଆମ୍ବ ଡାଳିମ୍ବ ବମ୍ବ ଦ୍ରାକ୍ଷା ଜମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ଶୁକ କପୋତ ହଂସ ସଙ୍ଗ
ସ୍ୱରୂପେ । ମହା ଅଦ୍ଭୁତ କଥା ଏହା ।
ସପତ ଜାତ ଫୁଲ ଫଳ ବିହଙ୍ଗ ଲତାକେ ଥିବା ଶୁଣାନାହିଁ ।"

ଏପରି କଳ୍ପନା ଦ୍ୱାରା କବିଙ୍କର ଅପୂର୍ବ କୃତିତ୍ୱ ଓ ମୌଳିକତା ପ୍ରମାଣିତ ହେଉଅଛି । ତଥାପି, ସଂସ୍କୃତ ସାହିତ୍ୟର ପ୍ରଭାବ ଭଞ୍ଜଙ୍କ ଉପରେ ପଡ଼ିଥିବାର ସ୍ପଷ୍ଟ ଜଣାପଡ଼େ । କାଳିଦାସ କୁମାର ସମ୍ଭବରେ ସମାଧିସ୍ଥ ଶିବଙ୍କୁ ପୂଜା କରିବାକୁ ଗଲାବେଳେ ପାର୍ବତୀଙ୍କୁ "ସଞ୍ଚାରିଣୀ ପଲ୍ଲବିନୀ ଲତା" ସଦୃଶ କଳ୍ପନା କରିଛନ୍ତି :—

"ଅଶୋକ ନିର୍ଭର୍ତ୍ସିତ ପଦ୍ମରାଗଂ
ଆକୃଷ୍ଟ ହେମଦ୍ୟୁତି କର୍ଣ୍ଣିକାରଂ
ମୁକ୍ତାକଳାପୀକୃତ ସିନ୍ଧୁବାରଂ
ବସନ୍ତ ପୁଷ୍ପାଭରଣଂ ବହନ୍ତୀ ।
ଆବର୍ଜିତା କିଞ୍ଚିଦିବ ସ୍ତନାଭ୍ୟାଂ
ବାସୋ ବସାନା ତରୁଣାର୍କରାଗଂ
ପର୍ଯ୍ୟାପ୍ତ ପୁଷ୍ପ ସ୍ତବକାବନମ୍ରା
ସଞ୍ଚାରିଣୀ ପଲ୍ଲବିନୀ ଲତେବ ॥"

ଭଟ୍ଟୀକାବ୍ୟରେ ସୀତାଦେବୀଙ୍କୁ ଲତାରୂପରେ କଳ୍ପନା କରାଯାଇଅଛି । ଯଥା:—

"ହିରଣ୍ମୟୀ ଶାଳଲତେବ ଜଙ୍ଗମା
ଚ୍ୟୁତାଦ୍ଦିବସ୍ଥା ସ୍ଫୁରିତା ଚିରପ୍ରଭା
ଶଶାଙ୍କକାନ୍ତେ ରଧିଦେବତାକୃତିଃ
ସୁତାଦଦେ ତସ୍ୟ ସୁତାୟ ମୈଥିଳୀ ॥"

ଅର୍ଥାତ୍, ଗମନଶୀଳା ସ୍ୱର୍ଣ୍ଣମୟୀ ଶାଳଲତା ପରି, ଅଚିରପ୍ରଭା ବିଦ୍ୟୁତ୍ ତୁଲ୍ୟ, ଚନ୍ଦ୍ରକାନ୍ତର ଅଧିଦେବତାକୃତି ମିଥିଳାଦେଶର ରାଜସୁତା ସୀତାଦେବୀଙ୍କୁ ଦଶରଥଙ୍କ ପୁତ୍ର ରାମଚନ୍ଦ୍ରଙ୍କ ସହିତ ବିବାହ କରାଇଥିଲେ ।

ଦାମ୍ପତ୍ୟ ପ୍ରେମ—

ଆର୍ଯ୍ୟ ସଂସ୍କୃତିରେ ଦାମ୍ପତ୍ୟ ସମ୍ବନ୍ଧ ଜନ୍ମ ଜନ୍ମାନ୍ତର ପାଇଁ ଏକ ଅବିଚ୍ଛେଦ୍ୟ ବନ୍ଧନ ବୋଲି ଧରାଯାଏ । ଭାରତୀୟ ନାରୀମାନଙ୍କ ମତରେ ସତୀ ସ୍ତ୍ରୀ ପରଜନ୍ମରେ ମଧ୍ୟ ନିଜର ପତି ସଙ୍ଗ ଲାଭ କରେ । ଏ ବିଷୟରେ ଋଗ୍‌ବେଦର ଆଜ୍ଞା ହେଉଛି :—

"ଯା ଦମ୍ପତୀ ସୁମନସା ସୁନୁତ ଆ ଚ ଧାବତଃ,
ଦେବାସୋ ନିତ୍ୟୟା ଶିରା
ସମଞ୍ଜନ୍ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ
ସଂମାତରିଶ୍ୱା ସଂଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ ॥"

ଅର୍ଥାତ୍, ଯେଉଁ ଦମ୍ପତୀ ( ସ୍ତ୍ରୀ-ପୁରୁଷ ) ଏକମନ ହୋଇ ଯଜ୍ଞ ( ସମାଜ ହିତକର କାର୍ଯ୍ୟ ) କରନ୍ତି ଏବଂ ଲୋକଯାତ୍ରା ପାଇଁ

ପରିଶ୍ରମ କରନ୍ତି ଏବଂ ନିତ୍ୟ ନିଜ ନିଜର କର୍ତ୍ତବ୍ୟ ପାଳନ କରି ଈଶ୍ୱର ପ୍ରସାଦ ପ୍ରାପ୍ତ ହୁଅନ୍ତି ସେମାନେ ଦେବତା । ଦେବଗଣ ଆମ ଦୁଇ ସ୍ତ୍ରୀ ପୁରୁଷଙ୍କୁ ସର୍ବଦା ଏକତ୍ର ରଖନ୍ତୁ; ଆମ ଦୁହିଙ୍କ ହୃଦୟ ସର୍ବଦା ଜଳବତ୍ ଅବିଛିନ୍ନ ରହୁ ଏବଂ ଆମ ଦୁହିଙ୍କ ଧ୍ୟାଣଶକ୍ତି, ଧାରଣଶକ୍ତି ଓ ଉପଦେଶ ପରସ୍ପର ହିତସାଧନ ଲାଗି ରହୁ । ମନୁସ୍ମୃତିରେ ଉଲ୍ଲେଖ ଅଛି:—

"ଅନ୍ୟୋନ୍ୟସ୍ୟାବ୍ୟଭିଚାରୋ
ଭବେଦାମରଣାନ୍ତିକଃ
ଏଷ ଧର୍ମଃ ସମାସେନ
ଜ୍ଞେୟଃ ସ୍ତ୍ରୀ ପୁଂସୟୋଃ ପରଃ ॥"

ଅର୍ଥାତ୍, ସ୍ତ୍ରୀ ପୁରୁଷ ଆଜନ୍ମ ପରସ୍ପର ଅବିଚ୍ଛିନ୍ନ ଭାବରେ ମିଳିତ ରହନ୍ତୁ । ଦୁହିଙ୍କ ମଧ୍ୟରେ କେତେବେଳେ ବିଚ୍ଛେଦ ନ ହେଉ, ଏହା ସଂକ୍ଷେପତଃ ସ୍ତ୍ରୀପୁରୁଷଧର୍ମର ସାର ଅଟେ । ସୃଷ୍ଟିରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଏହି ବେଦସାରରୂପୀ ମନୁଙ୍କ ଆଜ୍ଞା ଭାରତୀୟ ସଂସ୍କୃତିରେ ପାଳିତ ହୋଇ ଆସୁଅଛି । ଭାରତୀୟ ନାରୀଜାତିର ସ୍ଥାନ ଅତି ଉଚ୍ଚରେ । ସାବିତ୍ରୀଙ୍କ ପାତିବ୍ରତ୍ୟବଳରେ ମୃତ ସତ୍ୟବାନ୍ ପୁନର୍ଜୀବନ ଲାଭ କରିବା ଉପାଖ୍ୟାନ ସର୍ବଜନ ବିଦିତ, ସତୀତ୍ୱ ହେତୁ ଅଗ୍ନିପରୀକ୍ଷା ସମୟରେ ସୀତାଙ୍କୁ ଅଗ୍ନି ସ୍ପର୍ଶ କରି ସୁଦ୍ଧା "ହୁତାଶନ ଶ୍ଚନ୍ଦନ ପଙ୍କଶୀତଳଃ" ହୋଇ ଯାଇଥିଲା । ଜୟଦେବ ଲେଖିଛନ୍ତି:—

ପରସ୍ପର ତପଃ ସମ୍ପତ୍ତ ଫଳାୟିତ ପରସ୍ପରୌ
ପ୍ରପଞ୍ଚ ମାତାପିତରୌ ପ୍ରାଞ୍ଚୌ ଜାୟାପତୀ ସ୍ତୁମଃ ॥"

ଶିବ ଓ ପାର୍ବତୀ ଅଭିନ୍ନ ଦାମ୍ପତ୍ୟର ଜାଜ୍ଜ୍ୱଲ୍ୟମାନ ଦୃଷ୍ଟାନ୍ତ । ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ତାହାର ଅକାଟ୍ୟ ପ୍ରମାଣ ।

ମାଘଙ୍କ ଶିଶୁପାଳବଧରେ ଉଲ୍ଲେଖ ଅଛି:—

"ସତୀ ଚ ଯୋଷିତ୍ ପ୍ରକୃତିଃ ସୁନିଶ୍ଚଳା
ପୁମାଂସ ମଭ୍ୟେତି ଭବାନ୍ତରେଷ୍ୱପି ॥"

ଅର୍ଥାତ୍ ସତୀ ସ୍ତ୍ରୀ ଏବଂ ମନୁଷ୍ୟର ନିଶ୍ଚଳ ପ୍ରକୃତି ( ସ୍ୱଭାବ ) ପରଜନ୍ମାନ୍ତରେ ସୁଦ୍ଧା ସେହି ପୁରୁଷ ସହିତ ରହେ ଏବଂ କଦାପି ସେ ପୁରୁଷର ସଙ୍ଗ ଛାଡ଼େ ନାହିଁ । ଭାରତୀୟ ସଂସ୍କୃତିର ବିଶେଷତା ଏହି ଯେ ଥରେ ଯଦି ପତିପତ୍ନୀଙ୍କ ସମ୍ବନ୍ଧ ପ୍ରତିଷ୍ଠିତ ହୁଏ, ତାହାର ବିଚ୍ଛେଦ ଏ ଜନ୍ମରେ ଓ ପରଜନ୍ମରେ ମଧ୍ୟ ଘଟେ ନାହିଁ ।

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାନଙ୍କରେ ଅବିଚ୍ଛେଦ୍ୟ ଦାମ୍ପତ୍ୟ ପ୍ରେମର ଆଦର୍ଶ କିପରି ଅପ୍ରତିହତ ଓ ପରିପୁଷ୍ଟ ହୋଇଅଛି ତାହା ନିମ୍ନଲିଖିତ ପଦ୍ୟାଂଶମାନଙ୍କରୁ ପ୍ରତିପାଦିତ ହେବ:—

"ପ୍ରୀତି ହୋଇ ଯେବେ ଏତେକ ମଧୁର,
କ୍ଷୁଧା ତୃଷା ପୁଣି ହୁଏ ବିଧୁର ।
ପୁଣି ଦଇବେ ହୋଇଲେ ଦମ୍ପତି ।
ପଦତଳେ ମିଳେ ଇନ୍ଦ୍ର ସମ୍ପତ୍ତି,
ପଶୁମାନେ ବଶ ହେଲେ ଏ ରସେ ।
ଯେହୁ ପାଷାଣ ସେ ଏଥି ନ ରସେ ॥"
( ରସିକ ହାରାବଳୀ )

"ଜିବ ସହସ୍ର ଜନ୍ମେ କ ପାସୋଟ;
ଅମୃତରୁ ପ୍ରିୟା ବାଣୀ ମଧୁର ।

ଆଜ୍ ଭେଟିବ ନୋହୁଛୁ ପରତେ;
ଭେଟ ହେବା ଉପାୟ ଅଛୁ ଏତେ ।
ପୁଣି ବରହ ଅନଳ ଦହନ;
ହୋନ୍ତା ଏ ମୋହର ଚନ୍ଦ୍ର ବଦନ ।
ଭସ୍ମ ଉଡ଼ାଇ କୃପାରେ ପବନ;
ନେଇ ପକାନ୍ତା କାନ୍ତା ସନ୍ନିଧାନ ।
କସ ବୋଲି ବାଳା କରନ୍ତା ଦୃଷ୍ଟି;
ତହିଁ ପରେ ହୁଅନ୍ତା ସୁଧାବୃଷ୍ଟି ।
ହୋଇ ମୁର୍ତ୍ତିମନ୍ତ ମୁଁ ଗୃହିଁ ମୁଟ;
କର ଯୋଡ଼ି ଜଣାନ୍ତି ସବୁ ଦୁଃଖ" ।
( ଲବଣ୍ୟବତୀ )

"ଦୂରେ ଥିଲେ ପାଶେ ଅଛୁ ଅବୁ ଏହା ପେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦମ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"

ଭଞ୍ଜୀୟ ସାହିତ୍ୟ ଅବଚ୍ଛେଦ୍ୟ ଏବଂ ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ଅନାବିଳ ଧାରା ଦ୍ୱାରା ପ୍ଲାବିତ । ଉଦ୍‌ଭ୍ରାନ୍ତ ପ୍ରେମ ଜନିତ ଉଚ୍ଛୃଙ୍ଖଳତା ଭଞ୍ଜଙ୍କ କଳ୍ପନାର ବାହାରେ ।

## ନାରୀସମ୍ମାନ

ଭାରତୀୟ ସଂସ୍କୃତିରେ ନାରୀପ୍ରତି ସମ୍ମାନ ଗୋଟିଏ ମହାନ୍ ଆଦର୍ଶ । ବେଦରେ ସ୍ତ୍ରୀଜାତିକୁ ସର୍ବ ପ୍ରଥମ ଉପଦେଶ ଦିଆ ଯାଇଅଛି:—

"ମାତୃ ଦେବୋ ଭବ" ଅର୍ଥାତ୍ ମାତାକୁ ଦେବତା ବୋଲି ଜ୍ଞାନ କର । ମନୁସ୍ମୃତିରେ ଉଲ୍ଲେଖ ଅଛି :—

"ଉପାଧ୍ୟାୟାନ୍ ଦଶାଚାର୍ଯ୍ୟ
ଆଚାର୍ଯ୍ୟାଣାଂ ଶତଂ ପିତା ।
ସହସ୍ର ନ୍ତୁ ପିତୃନ୍ ମାତା
ଗୌରବେଣାତିରିଚ୍ୟତେ ।
ପିତୃଭି ର୍ଭ୍ରାତୃଭି ଶ୍ଚୈତାଃ
ପତିଭିଃ ଦେବରୈ ସ୍ତଥା ।
ପୂଜ୍ୟା ଭୂଷୟିତବ୍ୟାଶ୍ଚ
ବହୁକଲ୍ୟାଣମୀପ୍ସୁଭିଃ ।
ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ
ରମନ୍ତେ ତତ୍ର ଦେବତାଃ;
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ
ସର୍ବାଃ ତତ୍ରାଫଳାଃ କ୍ରିୟାଃ ।"

ଅର୍ଥାତ୍, କେବଳ ବିଦ୍ୟା ପଢ଼ାଇବା ଉପାଧ୍ୟାୟଙ୍କଠାରୁ ଚରିତ୍ର ବିଷୟରେ ମଧ୍ୟ ଶିକ୍ଷା ଦେଉଥିବା ଆଚାର୍ଯ୍ୟ ଦଶ ଗୁଣରେ ବଡ଼ । ପିତା ଆଚାର୍ଯ୍ୟଙ୍କଠାରୁ ଶତେଗୁଣ ବଡ଼ । ମାତା ପିତାଠାରୁ ହଜାର ଗୁଣ ବଡ଼ । ନିଜ ଘରର କଲ୍ୟାଣେଚ୍ଛୁ ପିତା, ଭାଇ, ପତି, ଦେବର ପ୍ରଭୃତି କନ୍ୟା, ଭଉଣୀ ଓ ସ୍ତ୍ରୀ ପ୍ରଭୃତି ନାରୀ–ସମାଜକୁ ବସ୍ତ୍ରାଳଙ୍କାର ଆଦି ପଦାର୍ଥ ଦ୍ୱାରା ସମ୍ମାନ କରିବେ । କାରଣ ଯେଉଁଠାରେ ସ୍ତ୍ରୀ-ସମାଜର ସମ୍ମାନ ଥାଏ, ସେହିଠାରେ ହିଁ ସବୁ ଦେବତା ବାସ କରନ୍ତି ଏବଂ ଯେଉଁଠାରେ ସେମାନଙ୍କର ଅନାଦର ଥାଏ, ସେଠାରେ ସବୁ କାର୍ଯ୍ୟ ବିଫଳ ହୁଏ ।"

ଅଥର୍ବବେଦରେ ଏହି ଆଦର୍ଶ ସମର୍ଥିତ ହୋଇଅଛି ଯଥା :–

"ସମ୍ରାଜ୍ଞ୍ୟେଧି ଶ୍ୱଶୁରେଷୁ ସମ୍ରାଜ୍ଞ୍ୟୁତ ଦେବୃଷୁ ।
ନନନ୍ଦୁଃ ସମ୍ରାଜ୍ଞ୍ୟେଧି ସମ୍ରାଜ୍ଞ୍ୟୁତ ଶ୍ୱଶ୍ରାଃ"

ଅର୍ଥାତ୍ ଶ୍ୱଶୁରଘରକୁ ଯିବାସମୟରେ ବୋହୂକୁ ବେଦ ଉପଦେଶ ଦେଉଛି, ଯେ "ନିଜ ଶଶୁର ଆଗରେ ସମ୍ରାଜ୍ଞୀ ପଦ ପ୍ରାପ୍ତ ହୁଅ । ଦେବର, ନଣନ୍ଦ ଓ ଶାଶୂ ଆଗରେ ରାଣୀପଦ ପ୍ରାପ୍ତ ହୁଅ ।"

ରାମାୟଣ ଓ ମହାଭାରତରେ ନାରୀ-ସମ୍ମାନର ଅତୁଳନୀୟ ଦୃଷ୍ଟାନ୍ତ ରହିଛି । ରାବଣ ଦ୍ୱାରା ସୀତାଙ୍କର ଅପମାନ, ଯାହା ଫଳରେ ରାବଣ ସବଂଶ ନଷ୍ଟ ହୋଇଥିଲା, ଏବଂ ରାମଚନ୍ଦ୍ରଙ୍କ ଦ୍ୱାରା ସୀତାଙ୍କର ଉଦ୍ଧାର ରାମାୟଣର ବିଷୟବସ୍ତୁ । କୁରୁସଭାରେ ଦୁଃଶାସନ ଦ୍ୱାରା ବସ୍ତ୍ରହରଣପୂର୍ବକ ଦ୍ରୌପଦୀଙ୍କର ଅପମାନ ଓ ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରା ଦ୍ରୌପଦୀଙ୍କ ମାନରକ୍ଷା ଓ ସମ୍ମାନ ପ୍ରଦାନ ମହାଭାରତର ଗୋଟିଏ ପ୍ରଧାନ ଉପାଖ୍ୟାନ ।

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ନାୟିକାକୁ ଯେଉଁ ସମ୍ମାନ ଓ ସମାଜରେ ଉଚ୍ଚସ୍ଥାନ ଦିଆଯାଇଅଛି ତାହା ଭାରତୀୟ ସଂସ୍କୃତିର ଆଦର୍ଶସମ୍ମତ । ଭଞ୍ଜୀୟ ନାୟକ ନାୟିକାର ସୁଖ ଦୁଃଖରେ ସମଭାବାପନ୍ନ ଏବଂ ନାୟିକାର ହିତ ସାଧନ ନିମନ୍ତେ ସର୍ବଦା ବ୍ୟଗ୍ର ଓ ଉତ୍ସୁକ ।

"ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ
ସମସ୍ତ ପ୍ରକାରେ ମୁହିଁ
ମୋ ଆୟୁଷ ପାଇ ଜିଇ ଥାଉ ପଛେ
ଶରଦ-ଚନ୍ଦ୍ରମା-ମୁହିଁ"

(ଲାବଣ୍ୟବତୀ)

"ଯେତେ ଦୂରେ ପଥ ପଡ଼ିଥିଲେରେ ନଗାନା
ଟିକ୍କେ କ ନୁହଇ ଆନେ ବୃଷ ନାମ ଛନା
ବନ୍ଧୁ ! ତେମନ୍ତ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀକୋପୂର ।
(ପ୍ରେମସୁଧାନିଧି)

ନର ନାରୀକୁ କେବଳ ଭୋଗବିଳାସସମଗ୍ରୀ ବୋଲି କଳ୍ପନା କରି ନାହାନ୍ତି । ନାୟିକାକୁ ସମ୍ମାନ ଦେଖାଇ, ତାର ସୁଖଦୁଃଖରେ ନାୟକକୁ ଭାଗୀ କରାଇ ଏବଂ ନାୟକକୁ ନାୟିକାର ସେବକ ବୋଲି କହାଇ କବି ଯେଉଁ ନାରୀସମ୍ମାନରୂପକ ସାମାଜିକ ଆଦର୍ଶ ଜନସମାଜରେ ସ୍ଥାପନ କରିଅଛନ୍ତି ତାହା ଭାରତୀୟ ସାଂସ୍କୃତିକ ପରମ୍ପରାସମ୍ମତ ଏବଂ ସବୁ ଯୁଗରେ ଓ ସବୁ ଦେଶରେ ଆଦୃତ ହେଉଥିବ ।

## ଈଶ୍ୱରସତ୍ତା—

ଈଶ୍ୱରସତ୍ତା ବା ଈଶ୍ୱର ବିଶ୍ୱାସ ଭାରତୀୟ ସଂସ୍କୃତିର ପ୍ରଧାନ ଅଙ୍ଗ । ଯଜୁର୍ବେଦର ମନ୍ତ୍ର ହେଉଛି "ଈଶା ବାସ୍ୟ ମିଦଂ ସର୍ବଂଯତ୍ କିଞ୍ଚନ ଜଗତ୍ୟାଂ ଜଗତ୍ । ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧଃ କସ୍ୟସ୍ୱିଦ୍ଧନଂ ।" ଅର୍ଥାତ ଏ ଜଗତ୍‌ରେ ଯାହା କିଛି ସ୍ଥାବର ଜଙ୍ଗମ ପଦାର୍ଥ ଅଛି ସେ ସବୁ ଈଶ୍ୱରଙ୍କ ସତ୍ତାରୁ ବ୍ୟାପ୍ତ ହୋଇଅଛି । ତେଣୁ ଈଶ୍ୱରଙ୍କଦ୍ୱାରା ଦିଆଯାଇଥିବା ପଦାର୍ଥମାନ ଯଥାର୍ଥ ଉପଭୋଗ କର । ଅନ୍ୟ କାହାର ଧନ ଉପରେ ଲୋଲୁପ ଦୃଷ୍ଟି ପକାଅ ନାହିଁ ।"

ଗୀତାରେ ଉଲ୍ଲେଖ ଅଛି—

"ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜ୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା
ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ତୁଳସୀ ଦାସଙ୍କ ଭାଷାରେ—

"ଜବ ଜବ ହୋଇ ଧରମ କର ହାନୀ
ବାଢ଼ି ଅସୁର ଅଧମ ଅଭିମାନୀ
ତବ ତବ ପ୍ରଭୁ ଧରି ମନୁଜ ଶରୀର
ହରହିଁ ବେଗି ସଜ୍ଜନ ଭୟ ପୀର ।"

ବେଦ, ଧର୍ମଶାସ୍ତ୍ର, ପୁରାଣ ପ୍ରଭୃତି ଗ୍ରନ୍ଥରେ ଈଶ୍ୱରଙ୍କ ଗୁଣ କୀର୍ତ୍ତନ କରାଯାଇଅଛି । ଈଶ୍ୱରଙ୍କ ସର୍ବବାଦସମ୍ମତ ସ୍ୱରୂପ ହେଉଛି ଯେ ଈଶ୍ୱର ସତ୍ ଚିତ୍ ଆନନ୍ଦ ସ୍ୱରୂପ, ସର୍ବଶକ୍ତିମାନ, ସର୍ବଜ୍ଞ, ଦେଶକାଳାତୀତ, ନିତ୍ୟସ୍ୱରୂପ, ଏକ ଏବଂ ଅଦ୍ୱିତୀୟ ।

ତାଙ୍କ କାବ୍ୟକବିତାରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଉପେନ୍ଦ୍ର ଭଞ୍ଜ ଈଶ୍ୱରସତ୍ତା ସର୍ବଦା ଅନୁଭବ କରୁଥିଲେ ଏବଂ ରଚନାର ସିଦ୍ଧି ନିମନ୍ତେ ଭଗବାନଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖୁଥିଲେ । ଲାବଣ୍ୟବତୀ, ପ୍ରେମସୁଧାନିଧି, ଅବନାରସତରଙ୍ଗ ଓ ସୁବର୍ଣ୍ଣରେଖାରେ ରାମଚନ୍ଦ୍ରଙ୍କ ବନ୍ଦନା କରି ଏବଂ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ସୁଭଦ୍ରା ପରିଣୟ ଓ ରସିକ ହାରାବଳୀରେ ଜଗନ୍ନାଥଙ୍କ ବନ୍ଦନା କରି କାବ୍ୟ ଆରମ୍ଭ କରାଯାଇଅଛି । ବୈଦେହୀଶବିଳାସ ଓ

ଗ୍ରନ୍ଥ ଭୂଷଣରେ ଭଗବାନ ବିଷ୍ଣୁଙ୍କ ବନ୍ଦନା କରାଯାଇ କାବ୍ୟ ଆରମ୍ଭ ହୋଇଅଛି । ତା ଛଡ଼ା କାବ୍ୟମାନଙ୍କର ନାନା ସ୍ଥାନରେ ବିଶେଷତଃ ଅନେକ ଗ୍ରନ୍ଥର ଶେଷରେ କବି ତାଙ୍କର ଅଟଳ ଈଶ୍ୱର ବିଶ୍ୱାସ ଏବଂ ନିଷ୍ଠଳ ଭକ୍ତିର ଭୂରି ଭୂରି ପ୍ରମାଣ ଦେଇଛନ୍ତି । ଯଥା—

"କଠିନ ଦୋଷ ହରିଲ । ଶିଳାକୁ ଅବଳା କଲ ।
ନେ ପଦ-ପ୍ରସାଦେ ନଦ । ସ୍ଫୁରଣେ ମୋଦ ମୁଁ ।
ଉପେନ୍ଦ୍ର ଭଞ୍ଜ କବି । ନିରତେ ଚିତ୍ତରେ ଭାବି ।
ହୋଇବ ଅର୍ଥ ସରସ । ନୋହିବ ଦୋଷ ଯେ ।"

"ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ସେ ହିତ
ମହାଗୁରୁ ଭାବୁଁ ସେ କାଶୀଶ୍ୱରଙ୍କ ବନ୍ଦନା କରିବା ବିହିତ ।
ହୋଇଲ । କବି ଉପେନ୍ଦ୍ର ଭଞ୍ଜର ।
କାମ-ଦାୟକ ବିନାହ୍ୱକ-ଜନକ ଏ ଭାବରେ ପୁଣି ଜର୍ଜର ।"

"କହେ ଉପେନ୍ଦ୍ର, ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।
ଜାତ କଲେ କ୍ଷୀରାର୍ଣ୍ଣବୁଁ ସୁଧା ଘୋର ଚିତ୍ତବର୍ଣ୍ଣିବୁଁ ଉଦ୍ଗୀତ ।
ସେ ସତ । ସେ ବିବୁଧ ଏ ବୁଧ ରଞ୍ଜିତ ।
ଦୈତ୍ୟ ଖଳରେ ଅଧରକ୍ଷିତ । ଯେ ଗ୍ରାସିବ ହେବ ରାହୁ ମତ ।।"

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

"ହେ ରାମ କୃଷ୍ଣ ସୁନ୍ଦର କଳାପଚନ୍ଦ୍ରିକ
ରାଧାପତି ଚୁଟିହାସ ଅଘବିଖଣ୍ଡନ ।
ଉପେନ୍ଦ୍ର ଭଞ୍ଜ ବାଂଛିବର ମନୋରଥ
ଏ ଗୀତ ପୂର୍ଣ୍ଣ ହେବାରେ କର ହେଳା ସାର୍ଥ ।

(ଲାବଣ୍ୟବତୀ)

"ଈଶ ଅଯୋଧ୍ୟାର ଯୋଦ୍ଧାଙ୍କ ଭୂଷଣ ଦୂଷଣେଭ୍ରଣକୁ ଶିକ୍ଷୀ
ଶିକ୍ଷିକୁଳ ଭବ ଭଞ୍ଜ କହେ ତାଙ୍କ ଚରଣରେ ଚିତ୍ତ ରଖି ।"

(ରସିକହାରାବଳୀ)

"ଠାକୁରାଣୀ ସୀତା ଶୀତାଂଶୁମୁଖୀ ଚରଣ ଧ୍ୟାୟି
ଠବର୍ଣ୍ଣ ବର୍ଣ୍ଣନେ ହରଷେ ଉପେନ୍ଦ୍ର କହଇ ।"

(ଛାନ୍ଦଭୂଷଣ)

ଦିବରତରୁ ଅଗଜ ଜଳଜ ପଦ୍ମର ସମସ୍ତ ସମ୍ପଦ ଉପେନ୍ଦ୍ର ଭଞ୍ଜର ।"

(ଅବନାରସ୍ତରଙ୍ଗ)

ଏହିପରି ଅନେକ ଉଦାହରଣ ଦିଆଯାଇପାରେ । ସ୍ଥାନେ ସ୍ଥାନେ କବିଙ୍କର ଗଭୀର ଆତ୍ମ- ବିଶ୍ୱାସ ପ୍ରକାଶ ପାଇଛି ଯଥା—

"ଚରଣୀ କୁଳର ସାର । ଆଶ୍ରୟରୁ ନରନ୍ତର ॥
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦସାଗର ପାର ।"

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

ଏଠାରେ କବିଙ୍କର ଅହଙ୍କାର ସୂଚିତ ହେଉନାହିଁ କାରଣ ତାଙ୍କ ଶବ୍ଦପାଣ୍ଡିତ୍ୟ ରାମଚନ୍ଦ୍ରଙ୍କ କୃପା ଯୋଗୁଁ ସମ୍ଭବପର ହୋଇଅଛି ବୋଲି ସେ ସ୍ୱୀକାର କରିଛନ୍ତି । ଭଗବାନଙ୍କଠାରେ ଅଟଳ ବିଶ୍ୱାସ ଯୋଗୁଁ କବିଙ୍କର ଗଭୀର ଆତ୍ମ-ପ୍ରତ୍ୟୟ ହୋଇପାରିଛି । ଭାରତୀୟ ସଂସ୍କୃତିର ଆଧ୍ୟାତ୍ମିକତା ଈଶ୍ୱରବିଶ୍ୱାସ ଉପରେ ଗୁରୁତ୍ୱ ଦେଇ ରାମତାରକ ମନ୍ତ୍ରସିଦ୍ଧ କବିସମ୍ରାଟ ଲୋକ ସମାଜରେ ଏକ ମହନୀୟ ଆଦର୍ଶ ସ୍ଥାପିତ କରିପାରିଛନ୍ତି ଯାହା ଯୋଗୁଁ ସେ ଆମ୍ଭମାନଙ୍କର ଚିରସ୍ମରଣୀୟ ଓ ଚିରନମସ୍ୟ ରହିବେ ।

## ପୁନର୍ଜନ୍ମବାଦ—

ଭାରତୀୟ ସଂସ୍କୃତିରେ ପୁନର୍ଜନ୍ମବାଦ ଗୋଟିଏ ପ୍ରଧାନ ବିଷୟ । ଏପରି କି ବେଦର ପ୍ରାମାଣ୍ୟ ନ ମାନୁଥିବା ଏବଂ ଅନାତ୍ମବାଦୀ ବୌଦ୍ଧ ମଧ୍ୟ ପୁନର୍ଜନ୍ମବାଦକୁ ସ୍ୱୀକାର କରିଛନ୍ତି । ବୁଦ୍ଧଦେବ ନିଜର ଜାତକ ବୃତ୍ତାନ୍ତର ସାତଜନ୍ମ ପର୍ଯ୍ୟନ୍ତ କହିଛନ୍ତି । ବେଦରେ ପୁନର୍ଜନ୍ମବାଦର ସ୍ପଷ୍ଟ ନିର୍ଦ୍ଦେଶ ଅଛି ।

"ଯେୟଂ ପ୍ରେତେ ବିଚିକିତ୍ସା ମନୁଷ୍ୟେ ଅସ୍ତୀତ୍ୟେକେ
ନାୟମସ୍ତୀତି ଚୈକେ । ଏତଦ୍ବିଦ୍ୟା ମନୁଶିଷ୍ଟ ସ୍ତ୍ୱୟାହଂ
ବରାଣାମେ ବରସ୍ତୃତୀୟଃ" (କଠୋପନିଷଦ)

ଅର୍ଥାତ୍ ନାଚିକେତା ଯମଙ୍କଠାରୁ ତୃତୀୟ ବର ମାଗିଲା ବେଳେ ପଚାରୁଛନ୍ତି:–"ମନୁଷ୍ୟର ମୃତ୍ୟୁ ପରେ ସନ୍ଦେହ ରହୁଛି ଯେ ମୃତ୍ୟୁ ପରେ ଆତ୍ମା ଜୀବିତ ରହେ କି ନାହିଁ । କିଏ କହନ୍ତି ଆତ୍ମା ମରେ ନାହିଁ; କେତେ କେହି କହନ୍ତି ମନୁଷ୍ୟର ମୃତ୍ୟୁ ସଙ୍ଗେ ଆତ୍ମାର ମଧ୍ୟ ମୃତ୍ୟୁ ହୁଏ । ଏହାର ରହସ୍ୟ ମୋତେ ବତାନ୍ତୁ । ଏହା ମୋର ତୃତୀୟ ବର ।"

"ନ ସାମ୍ପରାୟଃ ପ୍ରତିଭାତି ବାଲଂ ପ୍ରମାଦ୍ୟନ୍ତ
ବିତ୍ତମୋହେନ ମୂଢ଼ଂ । ଅୟଂ ଲୋକୋ ନାସ୍ତି ପର ଇତି
ମାନୀ ପୁନଃ ପୁନଃ ବଶମାପଦ୍ୟତେ ମେ ॥"

"ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍
ଅଜୋନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ନ ହନ୍ୟତେ ହନ୍ୟମାନେ
ଶରୀରେ ॥"

*"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ,"

"ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜ୍ଜୁନ ।
ତାନ୍ୟହଂ ବେଦ ସର୍ବାଣି ନତ୍ୱଂ ବେତ୍ଥ ପରନ୍ତପ ।"

( ଗୀତା )

ଅର୍ଥାତ୍, "ଧନମଦମତ୍ତ ମନୁଷ୍ୟ ପରଲୋକର ଅର୍ଥ ବୁଝିପାରେ ନାହିଁ । ଏ ଦୃଶ୍ୟ ସଂସାର ସବୁ ଏବଂ ପରଲୋକ କିଛି ନୁହେ ଏ ଭଳିଆ ମତବାଦୀ ବାରମ୍ବାର ମୋର ଅଧୀନ ହୁଅନ୍ତି । ଆତ୍ମାର ଜନ୍ମ ନାହିଁ କି ମରଣ ନାହିଁ । ତେଣୁ ଏହା ଅଜ ( ଜନ୍ମରହିତ ), ନିତ୍ୟ ( ସଦା ବର୍ତ୍ତମାନ ), ଶାଶ୍ୱତ, ସନାତନ । ଦେହର ଅନ୍ତ ପରେ ଆତ୍ମା ନିହତ ହୁଏ ନାହିଁ । ଯେପରି ମନୁଷ୍ୟ ପୁରୁଣା ଲୁଗାକୁ ଛାଡ଼ି ନୂଆ ଲୁଗା ପିନ୍ଧେ ସେପରି ଆତ୍ମା ପୁରୁଣା ଶରୀରକୁ ତ୍ୟାଗ କରି ନୂଆ ଶରୀରକୁ ଗ୍ରହଣ କରେ । ହେ ଅର୍ଜୁନ ! ମୋର ବହୁ ବହୁ ଜନ୍ମ ବ୍ୟତୀତ ହୋଇଣି । ତା ମୁଁ ଜାଣେ; ତୁ ଜାଣୁନା ।"

ପୁନର୍ଜନ୍ମବାଦ ଉପେନ୍ଦ୍ର ଭଞ୍ଜଙ୍କ ଲେଖାରେ ପରିସ୍ଫୁଟ । ଲାବଣ୍ୟବତୀର ପ୍ରଥମ ଛାନ୍ଦରେ ଏହାର ସୂଚନା ଦିଆଯାଇଅଛି । ପାର୍ବତୀଙ୍କ ବାଞ୍ଛାରୁ ବାଞ୍ଛାବତୀର ଜନ୍ମ ଓ ପାର୍ବତୀଙ୍କ ସହ ପଶାକ୍ରୀଡ଼ା, ହର ଦର୍ଶନଭ୍ରାନ୍ତିରୁ ବାଞ୍ଛାବତୀକୁ ଅରଣ୍ୟରେ ସ୍ଥାପନ, ଦିବ୍ୟ ସ୍ତ୍ରୀ ପ୍ରାପ୍ତି ନିମନ୍ତେ ତପସ୍ୟାକାରୀ ଚିତ୍ରକର ରାଜକୁମାରର ବନ ମଧ୍ୟରେ ବାଞ୍ଛାବତୀର ଦର୍ଶନ, ଉଭୟଙ୍କର ପରସ୍ପରଠାରେ ଆସକ୍ତି, ପ୍ରଭାକରର ସ୍ପର୍ଶରେ ବାଞ୍ଛାବତୀର ମୃତ୍ୟୁ, "ପରଜନ୍ମରେ

ସ୍ତ୍ରୀ ରୂପେ ଏହାଙ୍କୁ ପାଇବୁ, ଶଙ୍କର ସଂସ୍କାର ନ କରି ଗଙ୍ଗା ସାଗରରେ ଝାସ ପ୍ରଦାନ କର" ଦୈବୀବାଣୀ ଶୁଣି ପ୍ରଭାକରର ଗଙ୍ଗା ସାଗରରେ ଝାସ ଏବଂ ତତ୍ପରେ ପ୍ରଭାକରର କର୍ଣ୍ଣାଟେଶ୍ୱରଙ୍କର ପୁତ୍ର ଚନ୍ଦ୍ରଭାନୁ ନାମରେ ଓ ବାଞ୍ଛାବତୀର ସିଂହଳେଶ୍ୱରଙ୍କ କନ୍ୟା ଲାବଣ୍ୟବତୀ ନାମରେ ଜନ୍ମଗ୍ରହଣ କରିବା ଉପାଖ୍ୟାନ ପୁନର୍ଜନ୍ମବାଦର ପ୍ରମାଣ ସ୍ୱରୂପ ।

## ତ୍ୟାଗ ଏବଂ ତପସ୍ୟା

ତ୍ୟାଗ ଏବଂ ତପସ୍ୟା ଭାରତୀୟ ସଂସ୍କୃତିର ମୂଳାଧାର । ଲାବଣ୍ୟବତୀ କାବ୍ୟରେ ତ୍ୟାଗ ଓ ତପସ୍ୟାର ଉପାଦେୟତା ପ୍ରମାଣିତ ହୋଇଅଛି । ଦିବ୍ୟ ସ୍ତ୍ରୀ ପ୍ରାପ୍ତି ନିମନ୍ତେ ପ୍ରଭାକରଙ୍କୁ କଠୋର ତପସ୍ୟା ଏବଂ ତପସ୍ୟାଜନିତ ତ୍ୟାଗ କରିବାକୁ ପଡ଼ିଥିଲା; ତା ଫଳରେ ବାଞ୍ଛାବତୀ ସଙ୍ଗେ ମିଳନ ହୋଇଥିଲା ।

"ଏମନ୍ତରେ ଗଲା ତହିଁ କେତେ ସମ୍ବତ୍ସର ।
ପ୍ରଭାକର ନାମେ ଏକ ଋଷି ସୁକୁମର ।
ତପ ତା ଅନ୍ତରେ ଅଛି ଦିବ୍ୟ ନାରୀ ଲୋଭେ ।
ପଞ୍ଚାଗ୍ନି ସ୍ଥାପନ କରେ ତପରୁ ମଧ୍ୟେ ।
ଗ୍ରୀଷ୍ମ ବୃଷ୍ଟି କାଳରେ ଗୃହଦ୍ୱାରକୁ ନ ଯାଇ ।
ଝଞ୍ଜାବାତ ଜଳପାତ କରନ୍ତା ସହଇ ।
ଶୀତେ ଜଳଶାୟୀ ଭୂମି ଶଯ୍ୟା ବସ୍ତ୍ର ହୀନେ ।
ମୃତ୍ତିକା ଶଙ୍କର ପୂଜା କରେ ପ୍ରତିଦିନେ ।"

(ଲାବଣ୍ୟବତୀ)

ଉଦ୍ଧ୍ୟା କନ୍ୟା ପ୍ରାପ୍ତି ପାଇଁ ଏପରି କଠୋର ତପସ୍ୟା ଓ ତ୍ୟାଗ ସମ୍ବନ୍ଧରେ ସଂସ୍କୃତର ପରମସ୍ୱ ସମ୍ମତ । କୁମାର ସମ୍ଭବରେ ପାର୍ବତୀ ଶିବଙ୍କୁ ପତିସ୍ୱରୂପରେ ପାଇବାପାଇଁ କଠିନ ତପସ୍ୟା କରିଥିବାର ଯେଉଁ ବର୍ଣ୍ଣନା ଅଛି ତାହା ଲାବଣ୍ୟବତୀର କବିଙ୍କୁ ପ୍ରସ୍ତୁତ କରିଥିଲା :—

"ଶୁଚେ ଚତୁର୍ଣ୍ଣାଂ ଜ୍ୱଳତାଂ ଶୁଚିସ୍ମିତା ହବିର୍ଭୁଜାଂ
ମଧ୍ୟଗତା ସୁମଧ୍ୟମା ।
ବିଜିତ୍ୟ ନେତ୍ରପ୍ରତିଘାତିନୀଂ ପ୍ରଭା ମନନ୍ୟଦୃଷ୍ଟିଃ ସବିତାରମୈକ୍ଷତ ।
ଶିଳାଶୟାଂତା ମନିକେତବାସିନୀଂ ନିରନ୍ତରାସ୍ୱନ୍ତରବାତବୃଷ୍ଟିଷୁ
ବ୍ୟଲୋକୟନ୍ନୁନ୍ମିଷିତୈ ସ୍ତଡ଼ିନ୍ମୟୈଃ ମହାତପଃ ସାକ୍ଷ୍ୟ
ଇବ ସ୍ଥିତାଃ କ୍ଷପାଃ ।
ନିନାୟ ସାତ୍ୟନ୍ତ ହିମୋତ୍କିରାନିଲାଃ ସହସ୍ୟ ରାତ୍ରି ରୁଦବାସ
ତତ୍ପରା ।
ପରସ୍ପରାକ୍ରନ୍ଦିନୀ ଚକ୍ରବାକୟୋଃ ପୁରୋବିୟୁକ୍ତେ ମିଥୁନେ କୃପାବତୀ"



ମୁଦ୍ରାକର—ଶ୍ରୀ ଅନସୂୟାପ୍ରସାଦ ପାଠକ
ରାଷ୍ଟ୍ରଭାଷା ସମବାୟ ପ୍ରେସ, କଟକ-୧